# ବସନ୍ତ ରୋଗ ଚିକିତ୍ସା ।

ମସୂରିକା ବା ବସନ୍ତ ରୋଗଟିଏ ଛୁଆଁରୋଗ । ସାଧାରଣରେ ଏହା ଠାକୁରାଣୀ ରୋଗ ନାମରେ ପରିଚିତ । ଏହି ରୋଗର ଚିକିତ୍ସା ପ୍ରଣାଳୀ ବୈଦ୍ୟ ଶାସ୍ତ୍ରରେ ଥିଲେ ମଧ୍ୟ ଠାକୁରାଣୀ କୋପ କରିବେ ବୋଲି ଅଜ୍ଞ ଗୃହସ୍ଥ ମାନେ ଅଭିମତ ଚିକିତ୍ସା ନକରି ଠାକୁରାଣୀଙ୍କ ଠାରେ ଧାନ, ଶୀତଳାଷ୍ଟୋତ୍ର ପାଠ ରୋଗୋପଶମର ଏକମାତ୍ର ସଦୁପାୟ ବୋଲି ମନେ କରିଥାନ୍ତି । ଦେବ ଦେବୀଙ୍କ ପ୍ରତି ଏପରି ଭକ୍ତି ବିଶ୍ୱାସ ରଖିଲେ ମଧ୍ୟ ଈଶ୍ୱରଙ୍କ ଦ୍ୱାରା ସର୍ଜିତ ଓ ଗଚ୍ଛିତ ହୋଇଥିବା ଔଷଧ ମାନ ବ୍ୟବହାର କରିବା ଉଚିତ । ଏହା ନକଲେ ଅର୍ଥାତ୍—ଈଶ୍ୱରଙ୍କ ଇଚ୍ଛା ବିରୁଦ୍ଧ କାର୍ଯ୍ୟ କଲେ ସୁଫଳ ବଦଳରେ କୁଫଳ ଜାତ ହେବାର ଅନେକ ସ୍ଥାନରେ ଦେଖାଯାଏ । ଅତଏବ ବୃଥା ଶଙ୍କା ତ୍ୟାଗକରି, ବୈଦ୍ୟଶାସ୍ତ୍ର ଲିଖିତ ଔଷଧମାନ ପ୍ରୟୋଗ କରିବା ସମସ୍ତ ଗୃହସ୍ଥ ମାନଙ୍କର କର୍ତ୍ତବ୍ୟ ।

ବସନ୍ତ ବିଶେଷ କଷ୍ଟପ୍ରଦ ରୋଗ । ଏହି ରୋଗରେ ଅକ୍ରାନ୍ତ ହେବାରୁ ପୃଥିବୀର ନାନା ସ୍ଥାନର କେତେ ଲୋକ ଖୋଲା ହୋଇଅଛନ୍ତି, କେତେ କଣା ହୋଇ ଅଛନ୍ତି, କେତେ ଅନ୍ଧ ହୋଇଅଛନ୍ତି· କେତେ ଲୋକଙ୍କର ବସନ୍ତ ଦାଗ ନଲିଭି ଗଭୀର, ବିକୃତ ହୋଇ ଯାଉଅଛି । କେତେକ ଲୋକ ସେହି ରୋଗରେ ମାନବଲୀଳା ସମ୍ବରଣ କରୁଅଛନ୍ତି । ଏପରି କଷ୍ଟପ୍ରଦ ପ୍ରାଣ ସଂହାରକ ରୋଗରେ ଅକ୍ରାନ୍ତ ନହେବା ନିମନ୍ତେ ପ୍ରତ୍ୟେକ ବ୍ୟକ୍ତିଙ୍କର ସାବଧାନତା ଅବଲମ୍ବନ କରିବା ଉଚିତ ।

ରୋଗାକ୍ରାନ୍ତ ନହେବା ନିମନ୍ତେ ଗୋ ବସନ୍ତ ବୀଜର ଟୀକା ଗ୍ରହଣ କରିବା ସୁବିବେଚନାର କାର୍ଯ୍ୟ । ଟୀକା ନେବାପରେ ବସନ୍ତ ହେଲେ ତାହା ମାରାତ୍ମକ ହୁଏନାହିଁ । ଏହି ଟୀକା ସାଧାରଣରେ " ଇଂରେଜି ଟୀକା " ନାମରେ ପରିଚିତ । ଏକ ବା ଦେଢ଼ମାସ ବୟସରେ ଥରେ, ୬ ବା ୭ବର୍ଷ ବୟସରେ ଥରେ ଏବଂ ୧୦ବର୍ଷ ବୟସ ସମୟରେ ଥରେ ଟୀକା ଗ୍ରହଣ କଲେ ବସନ୍ତ ରୋଗ ଆକ୍ରମଣରୁ ଅନେକା ଉପେକ୍ଷିତ ହୋଇଯାଏ । କୌଣସି ସ୍ଥାନରେ ରୋଗ ସଂକ୍ରାମକ ହୋଇ ଉଠିବା ସମୟରେ ସଦ୍ୟଜାତ ସ୍ତନ୍ୟପାୟୀ ଶିଶୁ ଏବଂ ଅନ୍ୟ ଯେଉଁମାନେ ଟୀକା ଗ୍ରହଣ କରି ନଥିବେ ବା ଯେଉଁମାନଙ୍କର ଗ୍ରହଣ କରିବାର ସମସ୍ତ

ହୋଇଥିବ ସେମାନଙ୍କର ଶୀଘ୍ର ଟୀକା ଗ୍ରହଣ କରିବା ଉଚିତ । ଗୋ ବୀଜ ଦ୍ୱାରା ଟୀକା ଦେବା ନିରାପଦ । ମନୁଷ୍ୟ ଶରୀରରୁ ବୀଜନେଇ ଟୀକା ଦେଲେ ଯାହା ଶରୀରରୁ ବୀଜ ଅଣାଯାଇଥିବ ତା ଦେହରେ ଗର୍ମି କୁଷ୍ଠ, ରକ୍ତ ବକ୍ତୃତ ବାତରକ୍ତ ଆଦି ବ୍ୟାଧିଥିଲେ ଟୀକା ନେବା ଲୋକର ଶରୀରରେ ଉକ୍ତ ରୋଗ ଜାତ ହେବା ଅସମ୍ଭବ ନୁହେ । ଅତଏବ ଏବିଷୟରେ ମଧ୍ୟ ସତର୍କତା ଆବଶ୍ୟକ ।

ରୋଗ ଆକ୍ରମଣ ନକରିବା ନିମନ୍ତେ ପୁରୁଷ ମାନେ ଡାହାଣ ହାତରେ, ସ୍ତ୍ରୀମାନେ ବାମହାତରେ ଗୋଟାଏ ଲେଖାଏଁ ଏ ବଛଡା ମଣ୍ଡି ଧାରଣ କରିବେ । ରୁଦ୍ରାକ୍ଷ ମାଳା ସର୍ବଦା ଧାରଣ କଲେ ଉପକାର ହୁଏ । କର୍ପୂର, ରୁଦ୍ରାକ୍ଷ ଏବଂ ହଳଦୀ ସମାନ ଭାଗରେ ଆଣି ଚୂର୍ଣ୍ଣରୁ ଅଧତୋଳା ଲେଖାଏଁ ଶୀତଳ ଜଳରେ ବାଟି ପାନକରିବ । ଅଙ୍କସ୍ତ୍ରି ମୂଳ ଓ ଗୋଲମରିଚ ସମାନଭାଗରେ ମିଶାଇ ଚୂର୍ଣ୍ଣରୁ ଅଧତୋଳା ଲେଖାଏଁ ଆଣି ଜଳରେ ବାଟି ପାନ କରିବ । ପୌଷ କୃଷ୍ଣ ଚତୁର୍ଦ୍ଦଶୀ ଦିନ ଚକ୍ର ଦଣ୍ଡ ଲାଗିଥିବା ଗୋଟାଏ ପତାକା ଏବଂ ଗନ୍ଧ ପୁଷ ଶିଙ୍ଗ୍ରାଲ ଚୂନରେ ଲିପା ହୋଇଥିବା ଗୋଟାଏ ମାଠିଆରେ ସ୍ଥାପନ କରି ଘରର ନୈଋତ କୋଣରେ ସ୍ଥାପନ କଲେ ସେଘରେ ବସନ୍ତବାଧା ହୁଏ ନାହିଁ, ହେଲେ ରୋଗୀ ସହଜରେ

ମାଟ୍ଟଙ୍କ ରଙ୍ଗର ଶୃଙ୍ଗଶୂନ୍ୟ ଏକ ପ୍ରକାର ଛେଳୀ ଅଛନ୍ତି, ସେମାନଙ୍କ ମୁଣ୍ଡର ଦୁଇପାଖ ଶୁକ୍ଳବର୍ଣ୍ଣ, ଏବଂ ପାଦର ବର୍ଣ୍ଣ ମଧ୍ୟ ଶୁକ୍ଳ ଅଟେ । ଅନ୍ୟାନ୍ୟ ଛାଗର ତୁଳନାରେ ସେମାନଙ୍କର ଶରୀରର ଗନ୍ଧ ଊଣା । ସେମାନେ ପ୍ରତ୍ୟହ ୩ ସେର ଲେଖାଁଏ ଦୁଧଦେଇଥାନ୍ତି । ସ୍ପେନ ଦେଶରେ ନାନାଜାତୀୟ ଛେଳୀ ଅଛନ୍ତି ଏବଂ ସେମାନେ ପ୍ରଚୁର ପରିମାଣରେ କ୍ଷୀର ପ୍ରଦାନ କରିଥାନ୍ତି । ଅନ୍ଦୃଉଲ୍ୟାଣ୍ଡର ଛେଳିମାନଙ୍କର ଶିଙ୍ଗ ବଡ଼, କିନ୍ତୁ ଦୁଧର ପରିମାଣ ଅତି ବେଶୀନୁହେଁ ।

ନରୱେ, ମିଶର, ଅବିସିନିଆ ଏବଂ ତନ୍ନିକଟବର୍ତ୍ତୀ ପ୍ରଦେଶରେ ଏକଜାତୀୟ ଛାଗ ଅଛନ୍ତି ଯେ ସେମାନେ ସାଧାରଣ ଛାଗ ଅପେକ୍ଷା ଆକାରରେ ଦେଢ଼ଗୁଣ ବଡ଼ । ସେମାନଙ୍କର ପାଦ ବିଶେଷ ଲମ୍ବା । ସାଧାରଣତଃ ସେମାନଙ୍କ ଶିଙ୍ଗ ଥାଏନାହିଁ । ସେମାନଙ୍କ ଶରୀରରେ ଦୁର୍ଗନ୍ଧ ନାହିଁ ଏବଂ ସେମାନଙ୍କର ଦାଢ଼ୀ ଥାଏନାହିଁ । ଏହି ଜାତୀୟ ଛାଗ ଦିନକରେ ୫ ସେର ଲେଖାଁଏ ଦୁଧ ଦେଇଥାନ୍ତି ଏବଂ ବର୍ଷରେ ୨ ଥର, ପ୍ରତି ଥରକେ ୨—୩ ଟି ଶାବକ

ସୁପକ୍ୱ କରିଥାନ୍ତି । ଇଜପ୍ଟ ଦେଶରେ ଏକଜାତୀୟ ଛାଗ ଅଛନ୍ତି ଯେ, ସେମାନଙ୍କର ମୁଣ୍ଡ ସାନ, ଶିଙ୍ଗ ପ୍ରାୟ ହୁଏନାହିଁ, ଅଥଚ ନିତ୍ୟ ୫ ସେର ଲେଖାଏଁ ଦୁଧ ଦେଇଥାନ୍ତି । ତୁରସ୍କ ଦେଶର ଛେଳି ଦେଖିବାକୁ ଅନେକାଂଶରେ ମେଣ୍ଢାପରି । ସେମାନଙ୍କ ଲୋମଦ୍ୱାରା ପଶମୀ ବସ୍ତ୍ର ପ୍ରସ୍ତୁତହୁଏ, ସେମାନେ ଅଧିକ ଦୁଧ ଦଅନ୍ତିନାହିଁ ।

ଭାରତବର୍ଷରେ ୩ । ୪ ପ୍ରକାରର ଛେଳି ଅଛନ୍ତି । ପଶ୍ଚିମାଞ୍ଚଳର ଛାଗ ଅପେକ୍ଷା ବଙ୍ଗର ଛାଗ ଆକାରରେ କିଛି ବଡ଼ ହେଲେ ମଧ୍ୟ ଉଭୟେ ଏକଜାତୀୟ । ସେମାନେ ଭଲ ଖାଇବାକୁ ପାଇଲେ ପ୍ରଚୁର ପରିମାଣରେ ଦୁଧଦେଇଥାନ୍ତି । ଦାକ୍ଷିଣାତ୍ୟର ଛାଗମାନେ ଯେପରି ଆକାରରେ ବୃହତ୍, ସେହିପରି ବେଶୀ ପରିମାଣ ଦୁଧ ଦେଇଥାନ୍ତି । ସୌରାଷ୍ଟ୍ର ଦେଶର ଛାଗମାନେ ବର୍ଣ୍ଣରେ ଶୁକ୍ଳ ଏବଂ ସେମାନଙ୍କ କ୍ଷୀରର ପରିମାଣ କମ ନୁହେଁ । କାଶ୍ମୀର ଦେଶର ଛେଳିମାନେ ଦେଖିବାକୁ ମେଣ୍ଢାପରି, ସେମାନେ ଅଳ୍ପ ପରିମାଣରେ ଦୁଧ ଦେଇଥାନ୍ତି । ସେମାନଙ୍କ ଲୋମଦ୍ୱାରା ପ୍ରସ୍ତୁତହୁଏ ।

ଶ୍ୱାସ, ତୃଷ୍ଣା, ପ୍ରବଳମୋହ, ଅତ୍ୟନ୍ତ ବେଦନା, ଦୁଃସହ ଜ୍ୱର, ପ୍ରଳାପ, ଚିତ୍ତଚାଞ୍ଚଲ୍ୟ, ତୃଷ୍ଣା, ଦାହ, ଶରୀର ଘୂର୍ଣ୍ଣନ, କଣ୍ଠ ଦେଶରେ ଘଡ ଘଡ ଶବ୍ଦ ଅତ୍ୟନ୍ତ ବେଦନା ବା କେବଳ ସନ୍ଧିର ପର୍ବାସ୍ଥି ଭାଗ ଏରୋଗରେ ଶଙ୍କା ଜନକ ଲକ୍ଷଣ ।

ରୋଗ ନାଶର ଉପାୟ ।

ରୋଗର ପ୍ରଥମାବସ୍ଥାରେ ମେଥି ବତୁରଥିବା ଜଳ ପାନ କରିବ । କୁଡୁ ବା କୁରୁ ( ବର୍ଦ୍ଧୁର ) କୁଡଷୀର କ୍ୱାଥ ସେବନ କରିବ । ଶ୍ୱେତ ଚନ୍ଦନକୁ ଘୋଷି ଝଡଖା ( ହଲମେ ଡ ) ଶାମର ରସ ସହିତ ଅଥବା କେବଳ ଝଡଖା ଶାଗର ରସ ସେବନ କରିବ । କୁମୁରିଆ (ଜଙ୍ଗ କୁମ୍ଭାଡ଼ୁ) ଲତାର ରସ ବା କ୍ୱାଥରେ ଦୁଇଅଣି ଓଜନର ହେଙ୍ଗୁ ମିଶାଇ ସେବନ କରିବ । ତଲଡା ମଞ୍ଜିକୁ ଘିଅ ଓ ବାସି ପାଣି ସହିତ ଖାଇବ । ଗୁଆ ଗଛର ମୂଳ ଓ ମଧୁନା ( ମଦନ କୁସୁମ ) ମୂଳ ଅଥବା ମଇଡ ଏବଂ ମଟି ବରଷ୍ଟ ମୂଳ ଶୀତଳ ଜଳରେ ବାଟି ପାନ କରିବ ଜ୍ୱର ନାମାନ୍ତ ସାଧାରଣ ଜ୍ୱରର ଔଷଧ ପ୍ରୟୋଗ କରିବ ।

ପଟୋଲ ପତ୍ର, ଖେତ ପାଁପଡ଼ା, ଶୁଣ୍ଠି, ମୁଥା ଓ ଗଇରଜ କ୍ୱାଥରେ ମହୁ ମିଶାଇ ସେବନ କଲେ ଜ୍ୱର ଓ ବାନ୍ତି ମୂଳ ଉପଶମିତ ହୁଏ । ବସନ୍ତର ପୂର୍ବରେ

ଜ୍ୱର ପ୍ରକାଶ ପାଇଲେ ତୈଳସ୍ପର୍ଶ ପରିତ୍ୟାଗ, ବାୟୁଶୂନ୍ୟ ଗୃହରେ ବାସ, ଦେହରେ ଗଙ୍ଗେଇ ପତ୍ରର ଚୂର୍ଣ୍ଣ ମର୍ଦ୍ଦନ ଏବଂ ବସ୍ତ୍ର ଦ୍ୱାରା ଶରୀରକୁ ଆଚ୍ଛାଦନ କରି ରଖିବା ଆବଶ୍ୟକ । ରକ୍ତ ଚନ୍ଦନ, ବାସଙ୍ଗ ମୂଳ, ମୁଥା ଗୁଳୁଚ ଓ ଦ୍ରାକ୍ଷାର କ୍ଷୀର କଷାୟ ପାନକଲେ ଏସବୁ ଜ୍ୱର ଶାନ୍ତ ହୁଏ । ରକ୍ତ ଚନ୍ଦନ, ବେଣାମୂଳ, ମଞ୍ଜିଷ୍ଠା, କୁଡ଼ ଏବଂ ଗଇଲର କ୍ୱାଥରେ ମହୁ ମିଶାଇ ସେବନ କରାଇବ । ଦେହରେ ବସନ୍ତ ଥିବା ସମୟରେ ଜ୍ୱର ହେଲେ ଏହି ଔଷଧ ଦେବ ।

, ଦ୍ୱିତୀୟ ଅବସ୍ଥାରେ ବାନ୍ତି ଓ ଝାଡ଼ା କରାଇବା ଆବଶ୍ୟକ ! କିନ୍ତୁ ଉପଯୁକ୍ତ ଚିକିତ୍ସକଙ୍କ ଆଦେଶ ନପାଇ ବାନ୍ତି କରାଇବ ନାହିଁ ; କେବଳ ଝାଡ଼ା ହେବା ନିମନ୍ତେ ଔଷଧ ପ୍ରୟୋଗ କରିବ । ତ୍ରିବୃତ୍ତ ମୂଳର ଚୂର୍ଣ୍ଣ କିଛି ଭଣା ଅଧତୋଲା, ଗରମ ଜଳ ସହିତ ସେବନ କରିବ କିମ୍ବା ତ୍ରିଫଳାର କ୍ୱାଥ ପାନ କରିବ । କଲରା ପତ୍ରର ରସ ଏବଂ ଛୁଆଙ୍କିରେ ଅଧଛଟା ମଷା ହଳଦୀ ଚୂର୍ଣ୍ଣ ମିଶାଇ ସେବନ କରିବ । ମଳ କଠିନ ହେବାରୁ କୌଣସି ଅବସ୍ଥାରେ କଷ୍ଟ ହେଲେ କଷା ବେଲକୁ ପୋଡ଼ି ପାଣିରେ ଗୋଳି ଗୁଡ଼ ବା ଚିନି ସହିତ ଖୁଆଇବ ଏବଂ ମଳଦ୍ୱାରର ଚାରି ପାଗରେ କଲରା ପତ୍ରର ରସ ଅଥବା ଲବଣୀ ବା ଘିଅ ମାଲିସ କରିବ କିମ୍ବା ଚକ୍କିରେ ସେହାନକୁ ଓଦା କରି ରଖିବ ।

ଶ୍ୱେତର ତୃତୀୟ ଅବସ୍ଥାରେ ଗୋଟିମାନ ଶୀଘ୍ର ଆହାର ପରତା ବିଶେଷରେ ଚେଷ୍ଟା କରିବାକୁ ହେବ । ... ଯୋଗୀ କେବଳ ଔଷଧ ଲାଗ ଲମ୍ବରେ ପ୍ରକାଶ ପାଇ ଉଠୁଅଛି । ତଦ୍ୱାରା ଶୀଘ୍ର ବସନ୍ତ ରୋଗ ଉପଶମିତ ହେବ ।

ଗୁଡ଼ୂଚିଧୂଅ ଜଳ ଗରମ କରି ଗୋଟିଏ ବୋତଲ ( ବଡ଼ବାଟ ) ରେ ପ୍ରସ୍ତୁତ ରୋଗୀର ସର୍ବାଙ୍ଗରେ ସ୍ୱେଦ ଦେବ । ଗୁଳୁଚି ମୁଥା ଅରୁସୀ ଇନ୍ଦ୍ରଯବ ଓ କୁଡ଼ଚିର କ୍ୱାଥ ପାନ କରିବ । ଦ୍ରାକ୍ଷା ଗମ୍ଭାରି ଫଳ ଖଜୁରି କଷ ( ଖଜୁରି ଗଛ ମସ୍ତକର କୋମଳ ଅଂଶ ) ପାଚିଲ ପଣସ କମ୍ବୁଲର ବସର୍ଣ୍ଣ ଯୁକ୍ତ ଅଁଳା ଏବଂ ଖୋଖସା ମଞ୍ଜିର କ୍ୱାଥରେ ଚାଉଳ ଏବଂ ଖଇ ( ଲିଅ ) ଗୁଣ୍ଡ ମିଶାଇ ସେବନ କରିବ । ଯଷ୍ଟିର କେଶର; କାଞ୍ଜି ପାଣିରେ ବାଟି ଦେହରେ ବୋଳିଲେ ମସୂରିକା ଓ ମସୂରିକା ଜନିତ ଦାଗ ଉପଶମ ହୁଏ । ପଟୋଳ ପତ୍ର, କଳ୍ପବର୍ଣ୍ଣି ବଷା ମାଲଷ ଅଁଳା ଏବଂ ଗଇଁଚ କାଠର କ୍ୱାଥ ପାନ କରିବ । ହଳଦୀ ଦାରୁ-ହଳଦୀ, କେଶାମୂଳ ଶିରୀଷ ଫୁଲ, ମୁଥା, ଲୋଧ ଶ୍ୱେତ-ଚନ୍ଦନ ଓ ନାଗେଶ୍ୱର ଏକତ୍ର ବାଟି ଲେପଦେଲେ ବା ଦେହରେ ବୋଳିଲେ ଘର୍ମ୍ମ, ଦୌର୍ଗନ୍ଧ୍ୟ, ବିସର୍ପ, କୁଷ୍ଠ, ବ୍ୟଙ୍ଗଂ ଏବଂ ମିଳିମିଳା ଆରୋଗ୍ୟ ହୁଏ । ଗୋଟିଏ

ମୂଳ ଜମ୍ବା ଚେଇନ'କୁ ମୂଳ ଜଳରେ ବାଟି ସେବନ କରିବ । ପଟୋଳପତ୍ର, ଜମ୍ବୁପତ୍ର ଓ ବାସଙ୍ଗ ଛାଲର କ୍ୱାଥରେ କଟୁ, ଇନ୍ଦ୍ରଯବ, ଯାଠିମଧୁ ଏବଂ ମଦନ ଫଳର ଚୂର୍ଣ୍ଣ ମିଶାଇ ପାନକଲେ ବମନହୋଇ ବସନ୍ତସ୍ରାବଭଲ-ହୁଏ । ଗଇରକାଠ, ଅଁଳା, ହରିଡ଼ା, ବାହାଡ଼ା, ଜମ୍ବୁଛାଲ, ପଟୋଳପତ୍ର, ମୁଳଠି ଓ ବାସଙ୍ଗର କ୍ୱାଥ ସେବନ କଲେ ପିଲପିଲା, ବସନ୍ତ, କୁଷ୍ଠ ବିସର୍ପ ବିସ୍ଫୋଟ ଓ ରକ୍ତସ୍ରାବ ଉପଶମ ହୁଏ । ମୁଳଠି, ବାସଙ୍ଗ, ପଟୋଳ, ମୁଥା, ଛଇଅନାଛଇ, ଗଇରକାଠ, କଲାବେଉ, ଜମ୍ବୁପତ୍ର, ହଳଦୀ ଓ ଦାରୁହଳଦୀର କ୍ୱାଥ ସେବନ କଲେ ନାନାପ୍ରକାର ଦଦ୍ରୁକୁଷ୍ଠ, ବିସର୍ପ କୁଷ୍ଠ ବିସ୍ଫୋଟ, ରକ୍ତମସୂରି, ଶୀତପିତ୍ତ ଓ ଜ୍ୱର ଉପଶମ ହୁଏ । ରୋଗୀର ଗୋଟି ପଡ଼ି ନଥିବା ସମୟରେ ତାକୁ ନିମ୍ନଲିଖିତ ପ୍ରକାରେ ଶିରିଷ ( ବୁଢ଼ )ମଞ୍ଜି ଖୁଆଇବ । ଯଥା ପ୍ରଥମଦିନ ସକାଳେ ୧୨ ଦୁଇପ୍ରହରେ ୭ ଗୋଟା ସନ୍ଧ୍ୟାବେଳେ ୪ ଗୋଟା, ଦ୍ୱିତୀୟଦିନ ସକାଳେ ୧୦ ଗୋଟା, ସନ୍ଧ୍ୟାବେଳେ ୫ ଗୋଟା, ତୃତୀୟ ଦିନ ସକାଳେ ୫ ଗୋଟା ଶିରିଷ ମଞ୍ଜି ଗୁଡ଼ସହିତ ଖୁଆଇବ । ଗଜମଣ୍ଡଳକୁ ଥଣ୍ଡାକରି ଔଷଧସେବନପରେ ପିଆଇବ

ମୁଖ ଓ କଣ୍ଠ ମଧ୍ୟରେ ବସନ୍ତ ବାହାରି କଷ୍ଟ ପ୍ରଦାନ କଲେ, ଜାଇପତ୍ରୀ, ମଞ୍ଜିଷ୍ଠା, ଦାରୁହଳଦୀ, ଗୁଆ, ସମ—

ଘିଅ, ଯାଠିମଧୁ ଏବଂ ଅଁଳାର କ୍ୱାଥରେ, ଅମ୍ବା ଅଁଳା ଓ ଯାଠିମଧୁ କ୍ୱାଥରେ ମଧୁ ମିଶାଇ ବାରମ୍ବାର କୁଳ୍‌କୁଞ୍ଚ କରାଇବ । କଣ୍ଠ ରୋଗ ହେଲେ ପିପଳି ଓ ହରିଡା ଚୂର୍ଣ୍ଣ ମଧୁ ମିଶ୍ରିତ ଲେହନ କରାଇବ ।

ଚକ୍ଷୁମଧ୍ୟରେ ବସନ୍ତ ବାହାରିଲେ,— ଯାଠିମଧୁ ତ୍ରିଫଳା, ମୂର୍ବା, ଦାରୁହଳଦୀ, ଡାଳଚିନି, ନୀଳ ପଦ୍ମ, ବେଣାମୂଳ, ଲୋଧ ଏବଂ ମଞ୍ଜିଷ୍ଠା ଏହିସବୁ ଦ୍ରବ୍ୟ ବାଟି ଚକ୍ଷୁ ଉପରେ ଲେପନ କରିବ । ବସନ୍ତ ହେତୁ ଚକ୍ଷୁରେ ଘା ହେଲେ ଗରଗଡ ଓ ଯାଠିମଧୁ ଏହି ଦୁଇ ଦ୍ରବ୍ୟକୁ ସମ ଭାଗରେ ମିଶାଇ ତହିଁର କ୍ୱାଥ କୁ ଶୀତଳକରି ତଦ୍ୱାରା ଚକ୍ଷୁକୁ ଉତ୍ତମରୂପେ ବାରମ୍ବାର ଧୋଇବ । ଗୁଳୁଚି ଓ ଯାଠିମଧୁ ସମଭାଗରେ ମିଶାଇ ବାଟି ତହିଁର ରସ ଚକ୍ଷୁରେ ସେଚନ କରିବ । କର୍ପୂରଚୂର୍ଣ୍ଣ ମିଶ୍ରିତ ଜଳ ବା ଦେ-ଟାନ ଓ ମହୁଲ ଫୁଲ ସିଝାଇ ଶୀତଳ ହେଲରୁ ସେହି ଜଳ ବାରମ୍ବାର ଚକ୍ଷୁରେ ପକାଇବ । ଶାମୁକାର କୋଷାଭ୍ୟନ୍ତରସ୍ଥ ଜଳ ସେଚନରେ ମଧ୍ୟ ଉପକାର ହୁଏ ।

ପାଦ ତଳରେ ବସନ୍ତ ଗୋଟି ବାହାରିଲେ ଗୁଆଳ ଧୂଆ ଜଳରେ ପାଦକୁ ବୁଡ଼ାଇ ବା ଓଦା କରି ରଖିଲେ ବସନ୍ତ ଏବଂ ତତ୍କାଳ ଦାହ ପ୍ରଶମିତ ହୁଏ ।

ବସନ୍ତ ଗୋଟି ସମ୍ପୂର୍ଣ୍ଣରୂପେ ପ୍ରକାଶ ନହେଲେ,—

କଣ୍ଟକାରୀ ରସ, ଜମ୍ବୁ ( ଜଉଁଷି ଜାମୁକୁଡ଼ ) ପତ୍ର ରସ ଓ ଛୁଆଁଳିଆ ରସରେ ଲବଙ୍ଗ ମିଶାଇ ଦେହରେ ମର୍ଦ୍ଦନ କରିବ । ତୁଳସୀ ପତ୍ର ରସରେ ସୁଅସ୍ତ୍ର କାଡ଼ି ସର୍ବାଙ୍ଗରେ ମର୍ଦ୍ଦନକଲେ ମିଳିମିଳା ଓ ବସନ୍ତଗୋଟି ବାହାରେ ।

ଗୋଟି ବାହାରି ଛପିଗଲେ,—ଜମ୍ବୁଫଳ କ୍ଷେତପାପଡ଼ା, ଯବାନକନ୍ଦ, ପଟୋଳପତ୍ର କଟୁକୀ, ବାସଙ୍ଗମୂଳ, ଦୁରାଳଭା, ଅଁଳା, ବେଣାମୂଳ ରକ୍ତ ଚନ୍ଦନ ଓ ଶ୍ୱେତଚନ୍ଦନର କ୍ୱାଥ ତାର ସହିତ ସେବନ କଲେ ଜ୍ୱର ଓ ବସନ୍ତୋତ୍ଥ ତ୍ରିଦୋଷପ୍ରଧାନ ମସୂରିକା ପ୍ରଶମିତ ହୁଏ, ଏବଂ ଯେଉଁ ସବୁବସନ୍ତ ଗୋଟି ବାହାରି ଛପିଯାଏ ତାହା ପୁନଶ୍ଚ ବହିର୍ଗତ ହୁଏ ।

ଅପକ୍ୱ ବସନ୍ତ ଉପଶମ ହେବା ଏବଂ ପକ୍ୱବସନ୍ତ ଶୀଘ୍ର ଶୁଷ୍କ ହେବା ସକାଶେ—ପଟୋଳ ଗୁଳୁଚି ମୁଥା ବାସଙ୍ଗଛାଲି, ଦୁରାଳଭା, ଚିରେଇତା, ଜାମୁଛାଲି କଟୁକୀ ଏବଂ କ୍ଷେତପାପଡ଼ାର କ୍ୱାଥ ସେବନ କରିବ ।

ଦେହରେ ବସନ୍ତର ଚିହ୍ନ ନରହିବା ପାଇଁ କେତକୀ ଫୁଲ ଛିଣ୍ଡିଥିବା ପାଣିରେ ପଡ଼ିଥିବା ସ୍ଥାନଗୁଡ଼ିକ ଓଦା କରି ରଖିବ ଏବଂ ଉକ୍ତ ପାଣିରେ ବାରମ୍ବାର ସ୍ନାନକରାଇବ । ଗଇଡ଼ା ଛାଣିଦ୍ୱାରା ସେଚନ କଲେ ମଧ୍ୟ ଉପକାର ହୁଏ ।

ଗୋଟିମାନ ଶୀଘ୍ର ପାଚିବା ନିମନ୍ତେ—ଗୁଳୁଚି ଯଷ୍ଟିମଧୁ, ଦ୍ରାକ୍ଷା, ଅଶ୍ୱମୂଳ ଓ ଡାଳିମ୍ବର କ୍ୱାଥ ଗୁଡ଼

ସହିତ ସେବନ କରାଇବ । ବରକୋଳିମଞ୍ଜିର ଚୂର୍ଣ୍ଣ ପୁରୁଣା ଗୁଡ଼ରେ ମିଶାଇ ଖାଇବ । ବସନ୍ତ ଗୋଟି ମାଂସରେ ମାଛି ନବସିବା ନିମନ୍ତେ ନିମ୍ବପତ୍ର ବା କୋମଳ ପଦ୍ମପତ୍ର ଦ୍ୱାରା ରୋଗୀକୁ ବିଞ୍ଚୁଥିବ । ଦୀର୍ଘ ନହେବା ନିମନ୍ତେ ଶାଳ-କାଠ ଚୂର୍ଣ୍ଣ ଦେବଦାରୁ ଚନ୍ଦନ ଓ ଅଗୁରୁ ଆଦିର ଧୂପ ଦେହରେ ଲଗାଇବ । ରୋଗୀର ଶଯ୍ୟା ଉପରକୁ ପିମ୍ପୁଡ଼ି ନଯିବା ନିମନ୍ତେ ଶଯ୍ୟା ଉପରେ ଏକ ଚୂନ ମଧ୍ୟରେ ହଳଦୀ ଗୁଣ୍ଡା ନିକ୍ଷେପ କରିବ । ଦୁଷ୍ଟ ବସନ୍ତ ଜଳହେବା ନିମନ୍ତେ ତାହା ଉପରେ ଜୋକ ବସାଇ ରକ୍ତ ମୋକ୍ଷଣ କରିବ ।

ଧୂପ—ଶ୍ୱେତଚନ୍ଦନ ସରଳ କାଠ ଦେବଦାରୁ ଚୂର୍ଣ୍ଣ ଓ ଗୁଗୁଳକୁ ଅଗ୍ନିରେ ପୋଡ଼ି ରୋଗୀର ଗୃହରେ ଧୂପଦେଲେ ବସନ୍ତରୋଗରେ ବିଶେଷ ଉପକାର ହୁଏ । ବଡ଼ ବଣକଲେଚଣା (ବାଉଁଶରଗାଲ) ଯବ, ବାସଙ୍ଗମୂଳ, କପା-ମଞ୍ଜି, ତୁଳସୀପତ୍ର, ବ୍ରାହ୍ମୀଶାଗ, ଅପାମାର୍ଗ, ଲୁଣ ଓ ଘିଅ ଏକତ୍ରକରି ତ୍ରିକାଳ ଧୂପ ପ୍ରଦାନ କଲେ ରୋମାନ୍ତ ବା ମିଳିମିଳା ଉପଶମ ହୁଏ ।

ଉପସର୍ଗର ଉପାୟ ।

ଅତିସାର ହେଲେ—ଜାମୁପତ୍ର ଓ ଆମ୍ବପତ୍ର ସମାନ ଭାଗରେ ମିଶାଇ କାଢ଼ି ଦହି ଓ ମଧୁସହିତ ସେବନ କରିବ ।

ବମନ ନିବାରଣ ନିମନ୍ତେ—ଅଗ୍ରେଇ ମଞ୍ଜା ଓଜନର

ହରଡ଼ା ଚୂର୍ଣ୍ଣ ଏବ ଝୁଣ୍ଟାଙ୍କ ଏକ୍ତ୍ରୈକର ଚର୍ଣ୍ଣରେ ଅଟେଳ ମଷା ଚନ ମିଶାଇ ସେବନ କରିବ ।

ପିପାସା ନିବାରଣ ନିମନ୍ତେ—କଦଳୀ ଗଛର ମୂଳକୁ ଛେଚି ତହିଁର ରସ ପିଆଇବ ।

ଅତିସାର ଓ ବମନ ନିବାରଣ ନିମନ୍ତେ—ଡ଼ାଳିମ୍ବ ଫଳ ଅଧଚୋଲା, ବୋଲବେଲଫଳ ଅଧଚୋଲା ପ ଠି-ଷ ବାଟି ମହୁ ମିଶାଇ ତତଲେ ଚୁଇ ଛେପକ ଗୁ ଅଇବ ।

ସର୍ପ ନିବାରଣ ନିମନ୍ତେ—ତଳଗୀ, ବାଲୁଙ୍ଗଲଗୀ, ବେଣାମୂଳ, ଶିରିଷଫଳ, ମୁଥା, ଗେନ୍ଧ, ଭେଳବାଲୁ, ଏବ ନାଗେଶ୍ୱର ସମାନ ଭାଗରେ ମିଶାଇ ଶୀତଳ ଜଳରେ ବାଟି ଦେହରେ ବୋଳିବ ।

ଦାହ ପିପାସା ଅଷ୍ଟିକତା ନିବୃତ୍ତି ନିମନ୍ତେ—ଦୁଇଭାଗ କପିପାଣିରେ ଏକଭାଗ ମହୁ ମିଶାଇ ପିଆଇବ ।

ଦାହ ନିବାରଣ ନିମନ୍ତେ — ହଳଦୀଗୁଣ୍ଡା ଅଟେଳ ମଷାରେ ଚେଡ଼ଧୁ ତେଜଭୀପଣ ମିଷାଇ ବାଟି/ମାନକଇବ ଉଦୁମ୍ବର ( ଯଜ୍ଞଡୁମ୍ବିରି ) ଫଳ, ଯାଠିମଧୁ ଏବ ପଦ୍ମ-କେଶର ବାଟି ଦେହରେ ଲଗାଇବ । ରକ୍ତଚନ୍ଦନ ମଞ୍ଜିଷ୍ଟା ନିମ୍ବପତ୍ର ଅର୍ଜ୍ଜୁନଫଳ, ସମଭାଗରେ ମିଶାଇ ବାଟିବ ତହିଁରେ ଦୁଧରୁ ଲହୁଣୀ ବାହାରକର ତହିଁରେ ମିଶାଇ ଦେହରେ ବୋଳିବ । ଅନନ୍ତ ( ଚୋଗଡ଼ଲଇ ) ମୂଳ

ଯବ କ୍ଷେତ୍ର, ବେଣାମୂଳ ଜାଇଫଳ, ଦୁବଘାସ ସମଭାଗରେ ଅଧ ପାଉ ପାଣିରେ ସିଝାଇ ଦେବ ।—

### ପଥ୍ୟାପଥ୍ୟ ଓ ସତର୍କତା ।

ଯେଉଁ ଘରେ ନାନା ପ୍ରକାର ପଦାର୍ଥ ଥିବ ଯେଉଁ ଘର ଶୁଖିଲା ନଥିବ ଏବଂ ଯେଉଁ ଘରେ ଉତ୍ତମ ରୂପେ ବାୟୁ ଚଳାଚଳ ହେଉଥିବ ସେପରି ଘରେ ରୋଗୀକୁ ନିରନ୍ତର ପରିଷ୍କାର ଶଯ୍ୟାରେ ରଖିବ । ସେଘରକୁ ଦେଖିଲେ ଯିବା ଆସିବା କରିବ ନାହିଁ । ରୋଗୀ ଶରୀରରେ ଥଣ୍ଡା ବା ଶୀତଳ ବାୟୁ ଲାଗିଲେ ପୀଡ଼ା ବୃଦ୍ଧି ହେବ । ରୋଗୀ ଶରୀରକୁ ବସ୍ତ୍ର ଦ୍ୱାରା ଆବୃତ ରଖିବ । ଟୀକା ଗ୍ରହଣ କରି ନଥିବା ଲୋକମାନେ ରୋଗୀର ପାଖକୁ ଯିବେ ନାହିଁ । ଏହି ରୋଗରେ ଅଧିକ ଔଷଧ ସେବନ କରିବାକୁ ହେବନାହିଁ ବାହ୍ୟ ପ୍ରୟୋଗ ବେଶୀ । ତାହା ବିଶେଷ ବିବେଚନା ପୂର୍ବକ ପ୍ରୟୋଗ କରିବ । ମୈଥୁନ ସ୍ୱେଦକ୍ରିୟା ପରିଶ୍ରମ ତୈଳ ଗୁରୁପାକ ଦ୍ରବ୍ୟ କ୍ରୋଧ ଶୋକ ବୃଷ୍ଟି ଶୀତଳ ଦୂଷିତ ଜଳ ଓ ବିରୁଦ୍ଧ ଭୋଜନ ଶିମ୍ବ ଅନ୍ନ ଶାକ ଲବଣ ବିଷମ ଭୋଜନ କଟୁ ଓ ଅମ୍ଳ ଦ୍ରବ୍ୟ ଏବଂ ମଳ ମୂତ୍ରାଦିର ବେଗ ଧାରଣ ଏସବୁ କରିବା ରୋଗୀର ପରିତ୍ୟାଜ୍ୟ । ପୀଡ଼ିତ ବ୍ୟକ୍ତି ଏବଂ ସେବାକାରୀମାନେ ତେଲ ଲଗାଇବେ ନାହିଁ । ଆମିଷ ଭକ୍ଷଣ କରିବେ ନାହିଁ । ରୋଗୀ ବାନ୍ତି ଓ ଦିବାନିଦ୍ରା

ଶୁଶ୍ରୂଷା ପ୍ରତି ସତର୍କ ହେବ । ରୋଗୀକୁ ସବୁ ଓ ଘରର ସର୍ବଦା ଲଘୁପଥ୍ୟ ଦେବ । ପଖାଳ ବାଇଗଣ କଲରା କାଙ୍କଡ଼ କଞ୍ଚାକଦଳୀ ସଜନା ଛୁଇଁ ଭଜାଭଜି ଏବଂ ଶୁଠ ମୁଗ ବା ମସୁର ଡାଲି ଏବଂ ପୁରୁଣା ଚାଉଳର ଭାତ ଦେବ, ରୋଗୀ ଥିବା ଘରେ ବାରମ୍ବାର ଧୂଆଁ ଗୁଗୁଳ ଦେଉଥିବ । ରୋଗୀର ଶଯ୍ୟାର ବସ୍ତ୍ର ଏବଂ ପରିଧେୟ ବସ୍ତ୍ର ବାରମ୍ବାର ବଦଳାଉ ଥିବ ଏବଂ ଖରାରେ ଶୁଖାଉଥିବ । ସେବକମାନେ ବେଶୀ ପରିମାଣରେ ଘିଅ ଖାଇବେ । ଦେହକୁ ଲହୁଣୀ ଦ୍ୱାରା ଚିକ୍କଣ କରି ରଖିବେ । ପିନ୍ଧା ଲୁଗା ବାରମ୍ବାର ବଦଳାଉଥିବେ, ମଇଳା ବା କୃଷ୍ଣବର୍ଣ୍ଣ ବସ୍ତ୍ର ବ୍ୟବହାର କରିବେନାହିଁ । କାରଣ ଗୋଟି ବଳପୂର୍ବକ ଛିଣ୍ଡେଇଲେ ଅପକାର ହୁଏ । ବାପିତଣ୍ଡୁଳ କ୍ୱାଥ ବା ଲେପ ବ୍ୟବହାର କରିବନାହିଁ । ରୋଗୀର ଶରୀରକୁ ଘିଅ ବା ଲହୁଣୀ ଦ୍ୱାରା ସବୁବେଳେ ଚିକ୍କଣ କରି ରଖିବ । ରୋଗୀର ଶଯ୍ୟା ଅଧିକ ଉଚ୍ଚରେ କରିବନାହିଁ । କୋମଳ ଶଯ୍ୟାରେ ଶୁଆଇବ, ଶଯ୍ୟାଉପରେ ଘୃତ ଲଗାହୋଇ ପଡ଼ିଥିବା ପଦ୍ମପତ୍ର ବା କଦଳୀପତ୍ର ଉପରେ ଶୁଆଇ ରଖାଇବ । ରୋଗୀକୁ ସବୁବେଳେ ସନ୍ତୋଷ ଦେଉଥିବ ଏବଂ କୌଣସି କଥା ବା କାର୍ଯ୍ୟରେ ସେ ଯେପରି ହଠାତ୍ ଭୟ ନ ପାଏ ତତ୍ପ୍ରତି ସାବଧାନ ରହିବ, ରୋଗୀକୁ ବହୁ ପରିଶ୍ରମ କରାଇବ ନାହିଁ । ରୋଗୀ

ଦେହରୁ ଜ୍ୱର ନଛାଡ଼ିବା ଏବଂ ମାଛି ପାଖରେ ନପଶିବା ନିମନ୍ତେ କମ୍ବଳରେ ଢାଙ୍କିଥିବ । ସେବକମାନେ ସବୁବେଳେ ପରିଷ୍କାର ଅବସ୍ଥାରେ ରହିବେ—ରୋଗୀକୁ ବା ରୋଗୀ ବ୍ୟବହୃତ ଦ୍ରବ୍ୟକୁ ସ୍ପର୍ଶ କଲେ କାର୍ବଲିକ ସାବୁନ ଦ୍ୱାରା ହାତ ଧୋଇଥିବ । ପଟ୍ଟ ଗୋଟି ଉପରେ ବାଗମ୍ବର ସଷିର ପାଉଁଷ ପକାଇଥିବ । ଗେଣ୍ଠି ଫୁଟିଗଲାରୁ କମ୍ପ୍ରେସ ଏବଂ କଞ୍ଚା ହଳଦୀ ବାଟି ରୋଗୀ ଶରୀରରେ ଲେପନ କରିବ । ଅବଶେଷରେ ଗୋଟିମାନ ଅଶୁଷ୍କ ଅବସ୍ଥାରେ ରହିଗଲେ ବ୍ରଣ ସ୍ଥେସେଲୁ ଚିକିତ୍ସା କରାଇବ । ରୋଗୋପଶମପରେ ରୋଗୀଥିବାଘର ଚୂନ ଦ୍ୱାରା ବା ମାଟି ଗୋବର ଦ୍ୱାରା ବତଳରେ ଲିପିବ, ସେ ଘରେ ଗନ୍ଧକର ଧୂଆଁ ଦେବ ଏବଂ କିଛୁଦିନ ସେଘର ବ୍ୟବହାର କରିବନାହିଁ ।

ପୁସ୍ତକର ନାନାସ୍ଥାନରେ ଲିଖିତ ନାନା ଦ୍ରବ୍ୟର ପିଇବା ଲଗାଇବା ଅଥବା ଧୂପଦେବାର ଔଷଧ ସବ ମାନଙ୍କ ମଧ୍ୟରୁ ଯାହା ଯାହା ଶୀଘ୍ର ମିଳିବ ତାହା ଆଣି କରି ମିଳିବା ଦ୍ରବ୍ୟମାନ ଯଥା ସ୍ଥଳରେ ପ୍ରୟୋଗ କରିବ ଏବଂ ବୟସ ଓ ବଳାବଳ ବିଚାରି ଯାବତ୍ ଔଷଧର ମାତ୍ରା ଠିକ କରିବ । ଅଧିକନ୍ତୁ ରୋଗ ବିଷୟରେ ଯେଉଁମାନେ ବିଶେଷକଥା ଅନୁଭବକରି ଜାଣିଅଛନ୍ତି ସେହି ଲୋକ ମାନଙ୍କ ପରାମର୍ଶ ଅନୁସାରେ ସକଳ କାର୍ଯ୍ୟ କରିବ ।

ସମାପ୍ତ ।